ପ୍ରକାଶକ

ଶ୍ରୀ ରବୀନ୍ଦ୍ରନାଥ ମହାନ୍ତି

କଟକ ପବ୍‌ଲିଶିଂ ହାଉସ୍,

ବାଲୁବଜାର, କଟକ - ୨

ନୂତନ ମୁଦ୍ରଣ—୧୯୮୬

ମୂଲ୍ୟ—ଦୁଇଟଙ୍କା ମାତ୍ର

ମୁଦ୍ରଣ

ନଅ ପବ୍‌ଲିଶିଂ ପ୍ରେସ୍,

ବାଲୁବଜାର, କଟକ-୨

# ମହାତ୍ମା ଗାନ୍ଧି

—୧—

"ଅର୍‌ର୍ ମେଁ, ଅର୍‌ର୍ ମେଁ ।"

ପିଲାଟିର ନିଦ ଚଉଁକିନା ଭାଙ୍ଗିଗଲା । ବୋଧହୁଏ କଅଣ ଗୋଟାଏ ସପନ ଦେଖୁଥିଲା । ତାକୁ ଜଣାଗଲା, ପେଟ ଭିତରେ ଯେପରି ଛେଳିଟା ରହି ବଡ଼ ବିକଳରେ ରଡ଼ି ଛାଡ଼ୁଛି—"ଅର୍‌ର୍ ମେଁ ।"

ପିଲାଟିର ମନ ଅତି ଖରାପ ହୋଇଗଲା । ସେ ଧଡ଼ପଡ଼ ହୋଇ ଉଠିବସିଲା । ଆଜି ଦିନଯାକର କଥା ମନେ ପଡ଼ି ମନ ବଡ଼ ଘାଣ୍ଟିଚକଟି ହେଲା । ସେ ଭାବିଲା—ତାକୁ ଆଜି ଏପରି ଦୁର୍ବୁଦ୍ଧି ଘୋଟିଲା କାହିଁକି ? ଦୁଇ ଆଖିରୁ ଧାରଧାର ଲୁହ ବି ବୋହିଗଲା ।

ପିଲାଟି ସ୍କୁଲରେ ପଢ଼େ । ସ୍କୁଲର କେତେ ଜଣ ସାଙ୍ଗ ସାଥୀ ମିଶି ଆଜି ବଣଭୋଜି କରିଥିଲେ । ଭୋଜିରେ ଛେଳିମାଂସ ରନ୍ଧା ଯାଇଥିଲା ।

ପିଲାଟି କେବେ ହେଲେ ଜୀବନରେ ମାଂସ ଖାଇ ନ ଥିଲା । ତାଙ୍କ ବଂଶରେ ବି କେହି ମାଛ ମାଂସ ଖାଆନ୍ତି ନାହିଁ ।

ଯେତେବେଳେ ଭୋଜିରେ ମାଂସ ରନ୍ଧାହେବା କଥା ଉଠିଲା; ସେତେବେଳେ ପିଲାଟି ବରାବର ମନା କଲା । ସାଙ୍ଗ ପିଲାମାନେ କହିଲେ, "ଆରେ ବୋକା, ମାଂସ ଖାଇଲେ ଆମେ ବଳୁଆ ହେବା । ତା ହେଲେ ସାହେବଙ୍କ ସାଙ୍ଗରେ ଲଢ଼ିବା । ତାଙ୍କୁ ଏ ଦେଶରୁ ତଡ଼ି ବାହାର କରିଦେବା । ଆମ ଦେଶ ସ୍ୱାଧୀନ ହେବ ।"

"ଆମ ଦେଶ ସ୍ୱାଧୀନ ହେବ"—ଏହି କଥା ଶୁଣି ପିଲାଟିର ମନ ବଦଳିଗଲା । ସେ ମାଂସ ତରକାରି ଖାଇବାକୁ ରାଜି ହେଲା । କଥା ରହିଲା—ଆଜି ସେ ମାଂସ ଚାଖିବ । ଯଦି ଭଲ ଲାଗେ, ତେବେ ଏଣିକି ସବୁ ଦିନ ଖାଇବ ।

ହେଲେ ଏ କଥା ଘରେ କେହି ଜାଣିବେ ନାହିଁ । ବାପା ମା ଜାଣିଲେ ଗାଳିଦେବେ, ମାଡ଼ ମାରିବେ । ମାଂସ ଖାଇବାକୁ ମନା କରିବେ ।

କେତେ ଜଣ ପିଲା ମିଶି ମାଂସ ଖାଇବେ ବୋଲି ଠିକ୍ କଲେ । ଗୋଟିଏ ନିଛାଟିଆ ଜାଗାରେ ଲୁଚି ଖାଇବସିଲେ । ଏ ପିଲାଟିର ମନ ହେଉ ନ ଥାଏ, ତରକାରି ପାଖକୁ ହାତ ଯାଉ ନ ଥାଏ । ତଥାପି ମନ ଦୃଢ଼ କରି ହାତରେ ତରକାରି ନେଲା । ଥରେ ମାତ୍ର ପାଟିରେ ଦେଇଛି, ତାକୁ ବାନ୍ତି ମାଡ଼ିଆସିଲା । ଖାଇପାରିଲା ନାହିଁ ।

ତଥାପି ଖାଇବାକୁ ଚେଷ୍ଟା କଲା । ଆଖି ବୁଜି, ମୁହଁ ବିକଟାଳିଆ କରି ତରକାରି ପାଟିକୁ ନେଲା; କିନ୍ତୁ ଏଥର ବି ହେଲା ନାହିଁ । ଉଠି ପଡ଼ି ମୁହଁ ହାତ ଧୋଇଲା । ଅନ୍ୟ ପିଲାମାନେ ମନ ଖୁସିରେ ତରକାରି ଖାଇଲେ ।

ପିଲାଟି ରାତିରେ ଆସି ଘରେ ଶୋଇଲା । ତାକୁ ଭଲ ନିଦ ହେଲା ନାହିଁ । ସବୁବେଳେ ସେହି ଭୋଜି କଥା ମନେ ପଡ଼ିଲା । ମନ ଘାଣ୍ଟିଚକଟି ହେଲା ।

ସେ ବିଛଣାରେ ପଡ଼ି ଛଟପଟ ହେବାକୁ ଲାଗିଲା । ରାତି ପାହାନ୍ତାକୁ ଟିକିଏ ଶୁଇନିଦ ଲାଗିଆସିଛି, ସେ ସପନ ଦେଖିଲା, ଗୋଟିଏ ଛେଳି ବଡ଼ ବିକଳରେ ବୋବାଉଛି—ଅର୍ର୍ ମେଁ । ସେ ଶବ୍ଦଟା ଯେପରି ତା ପେଟ ଭିତରୁ ଆସୁଛି ।

ସେଇ ମୁହୂର୍ତ୍ତରୁ ସେ ନିୟମ କଲା—ନା, ଆଉ କେବେହେଲେ ମାଂସ ଖାଇବାକୁ ମନ କରିବ ନାହିଁ ।

ସତକୁ ସତ ସେହି ଦିନୁ ସେ ଜୀବନରେ ଆଉ କେବେ ମାଂସ ଖାଇଲେ ନାହିଁ । କେଉଁଠି ଜୀବ ବଧ ହେଉଛି ଶୁଣିଲେ, ତାଙ୍କ ପ୍ରାଣ

ଥରେଉଠିଲା । ଅନ୍ୟକୁ ହିଂସା କରିବା ତାଙ୍କ ପାଖରେ ପାତସପନ ହେଲା । ତେଣୁ ତାଙ୍କୁ ଅହିଂସାର ଅବତାର କୁହାଯାଏ । ସମୁଦାୟ ପୃଥିବୀର ଲୋକେ ଏହି ଅହିଂସା ଯୋଗୁଁ ତାଙ୍କୁ ମୁଣ୍ଡିଆ ମାରନ୍ତି ।

ଏ ପିଲାଟିକୁ ସାରା ଦୁନିଆଁରେ କିଏ ନ ଜାଣିଛି, ଏପରି ନୁହେ । ଏ ହେଉଛନ୍ତି ଆମର ବାପୁଜୀ—ମହାତ୍ମା ଗାନ୍ଧି ।

—୨—

ମହାତ୍ମା ଗାନ୍ଧିଙ୍କ ପୂରା ନାମ ମୋହନଦାସ କରମଚାନ୍ଦ ଗାନ୍ଧି । ତାଙ୍କ ବାପାଙ୍କ ନାମ କରମଚାନ୍ଦ ଗାନ୍ଧି ଓ ମାଆଙ୍କ ନାମ ପୁତ୍‌ଲୀ ବାଈ ।

ମହାତ୍ମା ଗାନ୍ଧି ଗୁଜୁରାଟର କାଠିଆବାଡ଼ରେ ଜନ୍ମିଥିଲେ । ସେ ବାପ ମାଆଙ୍କର କୋଡ଼ପୋଛା ପୁଅ । ତାଙ୍କର ଆଉ ତିନୋଟି ବଡ଼ ଭଉଣୀ ଓ ଗୋଟିଏ ବଡ଼ ଭାଇ ଥିଲେ ।

ପିଲାଟି ଦିନୁ ଗାନ୍ଧିଙ୍କୁ ଗୋଟିଏ ବୁଢ଼ୀ ପାଳୁଥିଲେ । ତାଙ୍କ ନାଁ ରମ୍ଭା । ରମ୍ଭା ସବୁବେଳେ ଗାନ୍ଧିଙ୍କୁ କାଖେଇ ଏଣେତେଣେ ବୁଲନ୍ତି, ଖେଳାନ୍ତି । ତାଙ୍କ ନାମରେ କେତେ ଗୀତ ଗାଆନ୍ତି ।

ଟିକିଏ ବଡ଼ ହୋଇଗଲାରୁ ଗାନ୍ଧି ଏକୁଟିଆ ରହିବାକୁ ବଡ଼ ଡରିଲେ । ରମ୍ଭା ତାଙ୍କୁ ଶିଖାଇଲେ, "ବାପ, ତୋତେ ଯଦି ଡର ମାଡ଼ିବ, ତେବେ ମନେମନେ 'ରାମ'ଙ୍କୁ ଡାକିବୁ । ତା ହେଲେ ସବୁ ଡରଭୟ ଛାଡ଼ି ପଳାଇବ ।"

ଗାନ୍ଧିଙ୍କ ମନକୁ ଏ କଥା ପାଇଗଲା । ସେଇଦିନୁ କିଛି ଡର ଭୟ ହେଲେ କି ଆପଦ ବିପଦ ପଡ଼ିଲେ, ସେ ମନରେ ରାମନାମ ଜପନ୍ତି । ସେହି ରାମନାମ ଯୋଗରେ ସେ ଏତେ ବଡ଼ ହୋଇଥିଲେ । ତାଙ୍କୁ କେହି ଡରାଇ ପାରି ନ ଥିଲେ କି ଦବାଇ ଦେଇ ନ ଥିଲେ ।

ପାଞ୍ଚ ବର୍ଷ ବୟସ ହେଲାରୁ ଗାନ୍ଧି ଚାହାଳୀକୁ ପଢ଼ିବାକୁ ଗଲେ । ସେ ବଡ଼ ଲାଜକୁଳା ଥିଲେ । କୌଣସି ପିଲା ସାଙ୍ଗରେ ମିଶିପାରନ୍ତି ନାହିଁ । ସ୍କୁଲ ଛୁଟି ହେବା ସାଙ୍ଗେସାଙ୍ଗେ ଘରକୁ ପଳାଇ ଆସନ୍ତି ।

ଗାନ୍ଧି ଗାଁ ଗୁଜୁରାଟୀ ପାଠ ସାରି ହାଇସ୍କୁଲକୁ ପଢ଼ିବାକୁ ଗଲେ। ଥରେ ଶିକ୍ଷାବିଭାଗର ବଡ଼ ହାକିମ ଇନ୍‌ସପେକ୍‌ଟର ତାଙ୍କ ସ୍କୁଲ ଦେଖିବାକୁ ଆସିଥିଲେ । ପିଲାଙ୍କୁ ପରୀକ୍ଷା କରିବାଲାଗି ଗୋଟିଏ ବନାନ ପଚାରିଲେ । ସବୁ ପିଲାଏ ବନାନଟି ଠିକ୍ କରି ଲେଖିଲେ । କିନ୍ତୁ ଗାନ୍ଧିଙ୍କର ଭୁଲ ହେଲା । ଇନ୍‌ସପେକ୍‌ଟରଙ୍କ ପଛରେ ଠିଆ ହୋଇ ଶିକ୍ଷକ ଗାନ୍ଧିଙ୍କୁ ଆଖି ଠାରି କହିଦେଲେ—ପାଖ ପିଲାର ଖାତା ଦେଖି ଠିକ୍ କରି ଲେଖ । ଗାନ୍ଧି ସେ କଥା ବୁଝିପାରିଲେ—କିନ୍ତୁ ପାଖ ପିଲାର ଖାତାକୁ ଚାହିଁଲେ ନାହିଁ । ସେ ଭାବିଲେ—ମୋତେ ତ ଆସେ ନାହିଁ । ମୁଁ ଅନ୍ୟ ଖାତା ଦେଖି କପି କରିବି କାହିଁକି ? ଏଇଟା ଯେ ଚୋରି କରିବା ଭଳି ହେବ ।

ସେହି ସମୟରେ ସେ ଶ୍ରବଣ ବୋଲି ଖଣ୍ଡିଏ ବହି ପଢ଼ିଲେ । ସେଥିରେ ଲେଖା ଥିଲା, ଶ୍ରବଣ ନିଜ ଅନ୍ଧ ବାପମାଆଙ୍କୁ ଭାର କରି କାନ୍ଧରେ ବସାଇ ଏଣେତେଣେ ନିଅନ୍ତି; ରାତିଦିନ ତାଙ୍କ ସେବା କରନ୍ତି । ଏହା ପଢ଼ି ବାପ ମାଆଙ୍କ ସେବା କରିବାକୁ ତାଙ୍କ ମନ ବ୍ୟାକୁଳ ହେଲା ।

ଆଉ ମଧ୍ୟ ସେହି ସମୟରେ ସେ ହରିଶ୍ଚନ୍ଦ୍ର ନାଟକ ଦେଖିଲେ । ହରିଶ୍ଚନ୍ଦ୍ର ରାଜା ନିଜ ରାଜ୍ୟ, ଧନସମ୍ପତ୍ତି ସବୁ ଦାନ କରି ପର ଘରେ ଚାକିରି କରିଥିଲେ । ଗାନ୍ଧି ଭାବିଲେ, ସମସ୍ତେ ଯଦି ଏମିତି ଦାତା ହୁଅନ୍ତେ, ତେବେ ଏ ଦେଶ ତ ସ୍ୱର୍ଗ ପାଲଟି ଯାଆନ୍ତା ।

—ତୀ—

ହାଇସ୍କୁଲରୁ ପାଶ୍ କରି ଗାନ୍ଧି କଲେଜରେ ନାମ ଲେଖାଇଲେ । କିନ୍ତୁ ସେଠାରେ ତାଙ୍କୁ ଭଲ ଲାଗିଲା ନାହିଁ । ସେହି ସମୟରେ ତାଙ୍କର ବାପା ମରିଯାଇଥିଲେ ।

ମୁରବିମାନେ ଠିକ୍ କଲେ, ଗାନ୍ଧି ବିଲାତ ଯାଆନ୍ତୁ । ସେଠାରୁ ବାରିଷ୍ଟରୀ ପାଶ୍ କରି ଆସିଲେ ବହୁତ ଟଙ୍କା ରୋଜଗାର କରିବେ ।

କେତେ ଜଣ କହିଲେ—ବିଲାତ ଗଲେ ଜାତି ଯିବ । ସେଠାରେ ସେ ମଦ ମାଂସ ଖାଇବେ, ଖରାପ ହୋଇଯିବେ ।

କିନ୍ତୁ ଗାନ୍ଧି ଜିଦ୍ ଧରିଲେ—ନା, ମୁଁ ବିଲାତ ଯିବି ।

ସେ ଯାହା ଜିଦ୍ ଧରନ୍ତି, ତା ତ ନିଶ୍ଚୟ କରନ୍ତି । ତାଙ୍କ ମା ଦେଖିଲେ, ଗାନ୍ଧିଙ୍କୁ ଆଉ ରଖିହେବ ନାହିଁ । ତେଣୁ ସେ କହିଲେ—"ବାପା, ତୁ ମୋ ଗୋଡ଼ ଛୁଇଁ ନିୟମ କର; ବିଲାତରେ ମଦ କି ମାଂସ ଖାଇବୁ ନାହିଁ । ଖରାପ ଲୋକ ସାଙ୍ଗରେ ମିଶିବୁ ନାହିଁ ।"

ଗାନ୍ଧି ମାଆଙ୍କ ଗୋଡ଼ ଛୁଇଁ ନିୟମ କଲେ । ସେ ନିୟମ ସେ ଠିକ୍‌ଠିକ୍ ରୂପେ ପାଳିଥିଲେ । ବିଲାତରେ ଯେତେ ଦିନ ରହିଲେ, ସେଠାରେ ଦିନେ ହେଲେ ମଦ କି ମାଂସ ଛୁଇଁ ନାହାନ୍ତି । ଖାଲି ବିଲାତରେ ନୁହେଁ, ତାଙ୍କ ଜୀବନଯାକରେ ସେ କଦାପି ମଦ ମାଂସ କଥା ମନରେ ଭାବି ନାହାନ୍ତି । ନିଜେ ଖାଇବା ଦୂରେଥାଉ, ଦୁନିଆର ସବୁ ଲୋକେ ମଦ ମାଂସ ଛାଡ଼ିଦିଅନ୍ତୁ, ସମସ୍ତେ ଭଲ ମଣିଷ ହୁଅନ୍ତୁ—ଏହି କଥା ସେ ପ୍ରଚାର କରି ଯାଇଛନ୍ତି । ଏଇଥିପାଇଁ ନିଜ ଜୀବନ ବି ଦେଇଛନ୍ତି ।

ବିଲାତରେ ବାରିଷ୍ଟରୀ ପାଶ୍ କରି ସେ ଦେଶକୁ ଫେରିଲେ । ବିଲାତରେ ଥିବାବେଳେ ତାଙ୍କ ମା ମରିଯାଇଥିଲେ । ଜାହାଜରୁ ଓହ୍ଲାଇବା ସାଙ୍ଗେସାଙ୍ଗେ ତାଙ୍କୁ ଏ କଥା ଜଣାଇ ଦିଆଗଲା । ମାଆ ନାହାନ୍ତି ଶୁଣି ଗାନ୍ଧି ବଡ଼ ଅଧୈର୍ଯ୍ୟ ହୋଇ ପଡ଼ିଲେ । ମନରେ ମାଆଙ୍କ ସ୍ନେହ ଆଦର କଥା ଖେଳିଗଲା । ତାଙ୍କ ରୂପ ବି ଆଖି ଆଗରେ ନାଚିଗଲା । ସେହି ସମୟରେ ତାଙ୍କୁ ଜଣାଗଲା, ମା ଯେପରି ଆକାଶରେ ରହି କହୁଛନ୍ତି, "ମୁଁ ପରା ତୋ ଦେଶ ସହିତ ମିଶିଯାଇଛି । ଦେଶ କଥା ଭାବିଲେ ମାଆ କଥା ଭାବିଲା ପରି ହେବ । ଦେଶର ସେବା କଲେ ମାଆର ସେବା ହେବ । ତୁ ଆଉ ମୋ କଥା ମନେ ନ ପକାଇ ଦେଶ କାମରେ ଲାଗି ଯା ।

ଗାନ୍ଧି ଦେଶକୁ ଫେରି ଚାକିରି କରିବେ ନାହିଁ ବୋଲି ଠିକ୍ କଲେ । ସେ କହିଲେ—ଚାକିରି କଲେ ମଣିଷ ପରର ଗୋଲାମ ହୋଇଯାଏ । ନିଜର ବୁଦ୍ଧି ବିବେକ କିଛି ରହେ ନାହିଁ । ତେଣୁ ସେ ସ୍ୱାଧୀନ ଭାବରେ ଜୀବନ କଟାଇବେ; ଓକିଲାତି କରିବେ ବୋଲି ଠିକ୍ କଲେ ।

ଓକିଲାତି କରିବାକୁ ହେଲେ, ମିଛ ସତ ଲଗାଇ କଥା କହିବା ଦରକାର । ତାଙ୍କ ଦ୍ୱାରା ତ ମିଛ କହି ହେବ ନାହିଁ । ତାଙ୍କୁ କେହି ମକଦ୍ଦମା ଦେଲେ ନାହିଁ । ତେଣୁ ପଇସା ରୋଜଗାର କରିବା ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । କେମିତି ଚଳିବେ—ଏହି ଭାବନା ମନରେ ଖେଳିଲା ।

ହାଇସ୍କୁଲରେ ପଢ଼ିଲାବେଳେ ଗାନ୍ଧି ବିବାହ କରିଥିଲେ । ତାଙ୍କ ସ୍ତ୍ରୀଙ୍କ ନାମ କସ୍ତୁରିବା ।

ଏତେବେଳକୁ ତାଙ୍କର ଦୁଇଟି ପିଲା ହେଲେଣି । ସେ ନିଜ ପେଟ ପୋଷିବେ କେମିତି, ସ୍ତ୍ରୀ ପିଲାଙ୍କୁ ଖୁଆଇବେ କଅଣ—ଏହି କଥା ଭାବିବାକୁ ଲାଗିଲେ । ଯେତେ କଷ୍ଟ ପଡ଼ୁ ପଛକେ, ଚାକିରି କରିବେ ନାହିଁ—ଏହା ଠିକ୍ କରି ନେଇଥିଲେ ।

—୪—

କିଛିଦିନ ପରେ ଗାନ୍ଧି ଆଫ୍ରିକା ଗଲେ ।

ଆଫ୍ରିକାରେ ବହୁତ ଜମି; କିନ୍ତୁ ବଣଜଙ୍ଗଲ ପୂରି ରହିଛି । ସେଠାରେ ଆଗେ ବଣୁଆ ଜାତିର ଲୋକ ରହୁଥିଲେ । ତା ପରେ ବିଲାତରୁ ସାହେବମାନେ ଆସି ଘରଦ୍ୱାର କରି ରହିଲେ । ସେମାନେ ବଣ ଜଙ୍ଗଲ ସଫା କରି ଚାଷ କଲେ ।

କିନ୍ତୁ ଚାଷକାମ ତ ଜଣେ ଦୁଇଜଣ ଲୋକଙ୍କ ହାତରେ ହେବ ନାହିଁ । ବହୁତ ମୂଲିଆ, ଶ୍ରମିକ ଦରକାର । ସେମାନେ ଭାରତରୁ ମୂଲିଆ ଚାଷୀଙ୍କୁ ନେଇ ସେଠାରେ କାମରେ ଲଗାଇଲେ । କଥା ହୋଇଥିଲା, ଭାରତର ଲୋକେ ଯାଇ ପ୍ରଥମେ ପାଞ୍ଚ ବର୍ଷ ଚାକିରି କରିବେ । ତା ପରେ ହୋଇଯିବେ ସ୍ୱାଧୀନ । ସେ ଦେଶରେ ସାଧାରଣ ନାଗରିକ ହୋଇ ରହିବେ । ସେତେବେଳେ ସେମାନେ ଆଉ ଚାକର କି ବିଦେଶୀ ହୋଇ ରହିବେ ନାହିଁ ।

ପାଞ୍ଚଟା ବର୍ଷ ଭିତରେ ଭାରତର ଲୋକେ ଦକ୍ଷିଣ ଆଫ୍ରିକାର ବହୁତ ଜମି ଚାଷ କଲେ । ଠାଙ୍ଗର ଭୂଇଁରେ ସୁନା ଫଳାଇଲେ । ଗୋରାମାନେ

ସେହି ଫସଲ ବିକି କୋଟିକୋଟି ଟଙ୍କା ରୋଜଗାର କଲେ; ଖୁବ୍ ଧନୀ ହେଲେ ।

ଆଗର ଚୁକ୍ତି ଅନୁସାରେ ଭାରତରୁ ଯେଉଁ କୃଷୀମୂଲିଆ ଯାଇଥିଲେ, ସେମାନେ କହିଲେ, ଏଣିକି ଆମେ ଆଉ ତୁମର କାମ କରିବୁ ନାହିଁ । ଆମ ବାଟ ଆମେ ଦେଖୁଛୁ । ସ୍ୱାଧୀନ ଭାବରେ ଆମର ଜମି ଚାଷ କରିବୁ ।

ସାହେବଙ୍କ ଦେହରେ ଏହା ଗଲା ନାହିଁ । ସେମାନେ ଭାରତର ଲୋକଙ୍କୁ କଳାଲୋକ ବୋଲି କହି ତାଙ୍କ ଉପରେ ଭାରି ଜୁଲମ କଲେ । ଆମେ ହାଡ଼ି, ଡାଉରି, ପାଣ ପ୍ରଭୃତି ଲୋକଙ୍କୁ ଯେପରି ପାଖରେ ବସାଇ ଦେଉ ନଥିଲୁ, ଦୁର୍ ଦୁର୍ ମାର୍ ମାର୍ କରୁଥିଲୁ, ଭାରତ ଲୋକଙ୍କୁ ସେଠାରେ ସେହିପରି କରାଗଲା ।

ଭାରତର କୃଷୀ ମୂଲିଆଙ୍କ ସାଙ୍ଗରେ କେତେ ଜଣ ବେପାରୀ ବି ଆଫ୍ରିକାକୁ ଯାଇଥିଲେ । ସେହି ବେପାରୀଙ୍କ ଭିତରୁ ଜଣେ ଗାନ୍ଧିଙ୍କୁ ଆଫ୍ରିକାକୁ ନେଇଗଲେ । ତାଙ୍କର ସେଠାରେ ମକଦ୍ଦମା ଚାଲିଥାଏ । ସେହି କଥା ବୁଝି କଚେରୀରେ ଲଢ଼ିବାକୁ ସେ ଗାନ୍ଧିଙ୍କୁ ଡାକି ନେଲେ ।

ସେଠାକୁ ଯାଇ ଗାନ୍ଧି ଭାରତ ଲୋକଙ୍କର ଯେଉଁ ଦୁର୍ଦ୍ଦଶା ଦେଖିଲେ, ସେଥିରେ ତାଙ୍କ ଆଖିରୁ ଲୁହ ବହିଗଲା । ସେ ଭାବିଲେ, "ନା, ଏଠାରୁ କଳାଲୋକ ଗୋରାଲୋକ ଭେଦ ଉଠାଇବାକୁ ହେବ । ଭାରତ ଲୋକଙ୍କ ଉପରେ ଯେଉଁ ଜୁଲମ ହେଉଛି, ତାହା ବନ୍ଦ କରିବାକୁ ପଡ଼ିବ ।"

ସେଠାରେ ଯେତେ ଆମ ଦେଶର ଲୋକ ଥିଲେ, ଗାନ୍ଧି ସେ ସମସ୍ତଙ୍କୁ ଏକାଠି କରାଇଲେ । ସେମାନଙ୍କୁ ବୁଝାଇଲେ—ଆମେ ଆଉ ସାହେବମାନଙ୍କ ଜୁଲମ ସହିବା ନାହିଁ । ଏ ଦେଶରେ ସେମାନେ ଯେପରି ବିଦେଶୀ, ଆମେମାନେ ବି ସେହିପରି ବିଦେଶୀ । ତେଣୁ ଏଠାରେ ଆମ ଉଭୟଙ୍କର ସମାନ ଅଧିକାର ।

ଲୋକେ ଏହା ଶୁଣି ହସିଲେ । ସାହେବମାନେ ଧନୀ, ବଡ଼ଲୋକ; ସେମାନେ ଦେଶ ଶାସନ କରୁଛନ୍ତି । ସେମାନଙ୍କ ପାଖରେ ବନ୍ଧୁକ, ତୋପ, କମାଣ ସବୁ ଅଛି । ଆମେ ତ ହଳିଆ-ମୂଲିଆ ଲୋକ । ଆମ ହାତରେ

ହା, କୋଉ ବ୍ୟକ୍ତିତ ଆଉ କହୁ ନାହିଁ । ଆମେ ତାଙ୍କ ସାଙ୍ଗରେ ସମାନ ହେବା କେମିତି ?

ଗାନ୍ଧିଜୀ ବୁଝାଇଦେଲେ—ଆମେ ଲଢ଼େଇ କରିବା; କିନ୍ତୁ ହିଂସା କରିବା ନାହିଁ । ସେମାନେ ଆମକୁ ମାରିବେ, ହାଣିବେ, ବନ୍ଧୁକରେ ଆମ ଛାତି ଫୁଟାଇ ଦେବେ । ଦିଅନ୍ତୁ । ଆମେ କିନ୍ତୁ ମାରିବା ନାହିଁ । କାହାକୁ ପ୍ରତିହିଂସା କରିବା ନାହିଁ । ଆମ କାମ ଆମେ କରି ଚାଲିଥିବା । କେବେ ହେଲେ ପଛଘୁଞ୍ଚା ଦେବା ନାହିଁ । ଦେଖାଯାଉ, ସାହେବମାନେ କେତେ କଣ କରିପାରିବେ ?

ଲୋକେ ଏଥିରେ ରାଜି ହେଲେ । ଭାରତର ଲୋକେ ନିଜ ଦାବୀ ହାସଲ କରିବାକୁ ଲାଗିଗଲେ । ସାହେବଙ୍କ ଗୃହକାମ ଆଉ କେହି କଲେ ନାହିଁ । ସମସ୍ତେ କହିଲେ—ତୁମେ ଯେଉଁ ମଣିଷ, ଆମେ ସେହି ମଣିଷ । ତୁମର ଯେଉଁ ଅଧିକାର, ଆମର ବି ସେହି ଅଧିକାର ।

ସାହେବମାନେ ଏହା ସହନ୍ତେ କିପରି ? ସେମାନେ ଗାନ୍ଧିଙ୍କୁ ଧରି ବହୁତ ମାଡ଼ ଦେଲେ । ଭାରତ ଲୋକଙ୍କ ଉପରେ ଅତ୍ୟାଚାର ଆରମ୍ଭ କଲେ । ବହୁତ ଗୋଳମାଳ ଲାଗିଗଲା । ବହୁତ ଆନ୍ଦୋଳନ ହେଲା ।

ଶେଷକୁ ସାହେବମାନେ ଦେଖିଲେ, ଗାନ୍ଧି ଦବିବାର ଲୋକ ନୁହନ୍ତି । ତେଣୁ ଦୁଇ ପକ୍ଷରୁ ଲୋକ ବସି ଗୋଟାଏ ସମାଧାନ କରାଗଲା । ଭାରତ ଲୋକଙ୍କର ଆଫ୍ରିକାରେ କେତେକ ଅଧିକାର ରହିଲା । ସାହେବ-ମାନେ କଳାଲୋକଙ୍କୁ ଯେମିତି ଘୃଣା କରୁଥିଲେ, ତାହା ଦୂର ହେଲା ।

କଥାରେ ଅଛି, ଜାତିକୁ ହାତୀ ସରି ନୁହେଁ । ଭାରତର ଲୋକେ ଏକଯୁଟ ହେବାରୁ ଗୋରା ସାହେବଙ୍କ ବଳ ତୁଟିଲା । ସେମାନେ ଗାନ୍ଧିଜୀଙ୍କ କଥା ମାନିଲେ ।

ସେଠା କାମ ସାରି କେତେବର୍ଷ ପରେ ଗାନ୍ଧି ଭାରତକୁ ଫେରିଆସିଲେ । ସେତେବେଳେ ଆଫ୍ରିକାର ଲୋକେ ବହୁତ ଟଙ୍କାର ସୁନା ରୂପା ଅଳଙ୍କାର ଓ ନଗଦ ଟଙ୍କା ଗାନ୍ଧିଜୀଙ୍କୁ ଉପହାର ଦେଲେ । କହିଲେ—ତୁମେ ଆମ ପାଇଁ ଯେଉଁ କଷ୍ଟ ସହିଛ, ଆମକୁ ଯେପରି ଅଧିକାର ଦେଇଗଲ, 'ସେଇଥିପାଇଁ

ଆମେ ଏ ଭେଟି ଦେଉଛୁ । ଏହାକୁ ନ ନେଲେ ଆମ ମନରେ ବଡ଼ କଷ୍ଟ ହେବ ।

ଗାନ୍ଧି ସେ ଅଳଙ୍କାର ଓ ଟଙ୍କା କଉଡ଼ି ହାତରେ ଧରିଲେ । କିନ୍ତୁ ସେଥିରୁ କିଛି ହେଲେ ନିଜ ପାଇଁ ଆଣିଲେ ନାହିଁ । ସବୁ ଟଙ୍କା ଓ ଅଳଙ୍କାର ସେଇଠି କେତେ ଜଣ ଲୋକଙ୍କ ମାରଫତ୍ରେ ଦେଇଦେଲେ । କହିଲେ—ଏ ଧନ ଏଇଠା ଲୋକଙ୍କ ଭଲ କାମରେ ଖର୍ଚ୍ଚ ହେବ ।

—୪—

ଗାନ୍ଧି ଭାରତକୁ ଫେରିଆସିଲେ । ଆଫ୍ରିକାରେ ଯେପରି ସେ ଲଢ଼ିଥିଲେ, ଦୁଃଖ କଷ୍ଟ ସହି ଦାବୀ ହାସଲ କରିଥିଲେ, ତାହା ଭାରତର ଖବର କାଗଜମାନଙ୍କରେ ଛପା ହୋଇଥିଲା । ଲୋକେ ତାଙ୍କ କାର୍ଯ୍ୟକଳାପ ବିଷୟରେ ସବୁ କଥା ପଢ଼ିଥିଲେ । ତେଣୁ ଗାନ୍ଧି ଯେ ଜଣେ ବୀର ପୁରୁଷ, ଏହା ଭଲଭାବେ ସ୍ପଷ୍ଟ ହୋଇଯାଇଥିଲା ।

ଗାନ୍ଧି ଭାରତକୁ ଆସି ଆଗ ଦେଶର ସବୁ ଅଞ୍ଚଳ ଥରେ ବୁଲିଲେ । ପଣ୍ଡିତ, ଦେଶପ୍ରେମୀ ଲୋକଙ୍କ ସହିତ ମିଶିଲେ । ଏ ଦେଶର ଲୋକେ କିପରି କଷ୍ଟ ସହୁଛନ୍ତି, ତାହା ଦେଖିଲେ । ସେ ଜାଣିଲେ—କାହିଁ ସାତ ସମୁଦ୍ର ପାରି ଇଂଲଣ୍ଡରୁ ସାହେବମାନେ ଆସି ଆମର ରାଜା ହୋଇଛନ୍ତି । ଆମ ଦେଶ ଶାସନ କରୁଛନ୍ତି । ଆମକୁ ଚିପିଚାପି ସବୁ ଟଙ୍କାକଉଡ଼ି ଧନଦରବ ଇଂଲଣ୍ଡକୁ ବୋହିନେଲେଣି । ଆମ ଦୁର୍ଦ୍ଦଶା ବଢ଼ି ଚାଲିଛି । ଆମ ଦେଶ ସ୍ୱାଧୀନ ନ ହେଲେ ଆମକୁ ଏ ଦୁଃଖକଷ୍ଟରୁ ରକ୍ଷା ମିଳିବ ନାହିଁ । ତେବେ ଆମେ ସ୍ୱାଧୀନ ହେବା କିପରି ? ଇଂରେଜମାନଙ୍କୁ ଏ ଦେଶରୁ ତଡ଼ିବା କେମିତି ?

ସେ ଭାବିଭାବି ଠିକ୍ କଲେ—ଆଗ ଆମେ ଭଲ ମଣିଷ ହେବା ଦରକାର । ଭାରତର ସବୁ ଲୋକ ଏକଯୁଟ ହେଲେ ଆଉ ଇଂରେଜଙ୍କ କାରସାଦି ଖଟିବ ନାହିଁ । ଆମ ଭିତରେ ଯେଉଁ ଦୋଷ ରହିଛି, ଆମେ ଯେଉଁ ପାପ କାମ କରୁଛେ, ତା ନ ଛାଡ଼ିଲେ, ସାହେବମାନେ ଆମ ଉପରେ ରାଜା ହୋଇ ବସିଥିବେ । ସେଇଥିପାଇଁ ସେ ଠିକ୍ କଲେ—

—ଆମେ ସମସ୍ତେ ଗୋଟିଏ କଥାରେ ଚଳିବା । ଆମ ଭିତରେ ପାଠୂଆ ଅପାଠୂଆ, ଧନୀ ଗରିବ, ବ୍ରାହ୍ମଣ ଚଣ୍ଡାଳ—ଏମିତି ଯେଉଁ ଫରକ ଅଛି, ତାକୁ ଭୁଲିଯାଇ ସମସ୍ତେ ଏକ ହେବା । ହାଡ଼ି, ପାଣ, ବାଉରି, କଣ୍ଡରା ପ୍ରଭୃତି ଅଛୁଆଁ ଲୋକମାନେ ଆମ ଭାଇଭଉଣୀ, ଆମରି ପରି ଏ ଦେଶର ଲୋକ; ତେଣୁ ସେମାନଙ୍କ ସଙ୍ଗେ ମିଳିମିଶି ଚଳିବା । ସେମାନଙ୍କୁ ପାଖରେ ବସାଇବା । ସବୁବେଳେ ସମସ୍ତେ ସତ କହିବା ଓ ସତରେ ଚଳିବା । ଅନ୍ୟ ଲୋକଙ୍କୁ ହିଂସା କରିବା ନାହିଁ । ଯେତେ ବଡ଼ ଶତ୍ରୁ ହେଉ ପଛକେ, ତାକୁ ପଦେ ଗାଳି ବି ଦେବା ନାହିଁ । କେହି ମଦ, ଭାଙ୍ଗ, ଗଞ୍ଜେଇ, ଅଫିମ ଆଦି ନିଶା ଦ୍ରବ୍ୟ ଖାଇବା ନାହିଁ । ସମସ୍ତେ ସୂତା କାଟି ଲୁଗା ବୁଣି ପିନ୍ଧିବା । ଇଂଲଣ୍ଡରୁ ଆସୁଥିବା ଲୁଗାକୁ ଛୁଇଁ ରହିବା ନାହିଁ । ଆମ ଦେଶର ଜିନିଷ ଆମେ ବ୍ୟବହାର କରିବା—ପର ଦେଶକୁ ପଇସା ଗଣିବା ନାହିଁ । ନିଜ କାମ ନିଜେ କରିବା ।

ଏହି କଥା ସେ ଭାରତର ବଡ଼ ବଡ଼ ଲୋକଙ୍କ ଆଗରେ କହିଲେ । ସମସ୍ତଙ୍କ ମନକୁ ଏହା ପାଇଲା । କିନ୍ତୁ କହିବା ଭାରି ସହଜ, କାମରେ କରିବା ବଡ଼ କଷ୍ଟ ।

ରବୀନ୍ଦ୍ରନାଥ ଠାକୁର ଆମ ଦେଶର ଜଣେ ବଡ଼ କବି । ଶାନ୍ତି-ନିକେତନ ବୋଲି ସେ ଗୋଟିଏ ଆଶ୍ରମ କରିଥାନ୍ତି । ସେଥିରେ ବହୁତ ପିଲା ରହି ପାଠ ପଢ଼ନ୍ତି । ଅନ୍ୟାନ୍ୟ ଦେଶର ବହୁ ପାଠୂଆ ଲୋକ ବି ରହିଥାଆନ୍ତି ।

ଗାନ୍ଧି ସେଠାରେ କିଛି ଦିନ ରହିଲେ । ସେ ପିଲାଙ୍କୁ କହିଲେ—ତୁମ କାମ ତୁମେ ହାତରେ କର । ଗାନ୍ଧି ବି ତାଙ୍କ ସାଙ୍ଗରେ ଲଗିଗଲେ । ଘର ଦୁଆର ଓଳାଇବା, କଂସାବାସନ ମାଜିବା, ଭାତ ରାନ୍ଧିବା—ସବୁ କାମ ପିଲାଏ ଆନନ୍ଦରେ କଲେ । ଯେତେବେଳେ ପାଇଖାନା ସଫା କରିବାକୁ ପଡ଼ିଲା, ସେତେବେଳେ ପିଲାଏ ପଛାଇଲେ । ଗାନ୍ଧି ଟୋକେଇ ଝାଡ଼ୁ ଧରି ଆଗ ବାହାରି ପଡ଼ିଲେ । ନିଜେ ଯାଇ ସବୁ ପାଇଖାନା ସଫା କଲେ, ପାଣି

ଡାଳି ଧୋଇଲେ । ଏହା ଦେଖି ପିଲାଙ୍କ ଆଖି ଫିଟିଲା । ସେମାନେ ବି କାମରେ ଲାଗିଗଲେ ।

—୭—

ଦେଶରେ ଇଂରେଜମାନଙ୍କ ଜୁଲମ ବଢ଼ିଲା । ପଞ୍ଜାବରେ ଜଣେ ସାହେବ ଖୁବ୍ ଅତ୍ୟାଚାର କଲେ । ବନ୍ଧୁକରେ ହଜାର ହଜାର ଲୋକ ମାରି ପକାଇଲେ । ଆଉ କେତେ ଆଡ଼େ କେତେ ପ୍ରକାର ମାରଧର ବି ଚାଲିଲା । ଗାନ୍ଧି ମନରେ ଭାବିଲେ—ନା, ଆଉ ସହି ହେବ ନାହିଁ ।

ବହୁତ ଦିନ ଆଗରୁ ଦେଶର ପାଠୁଆ ଲୋକେ ବସି କଂଗ୍ରେସ ମହାସଭା ଗଢ଼ିଥାନ୍ତି । ସେଥିରେ ଦେଶର ହାନିଲାଭ ବିଚାର ହୁଏ । ଗାନ୍ଧି ସେ ମହାସଭାରେ ଯୋଗ ଦେଲେ । କହିଲେ—ଆମେ ଅସହଯୋଗ ଯୁଦ୍ଧ କରି ଇଂରେଜମାନଙ୍କୁ ଏ ଦେଶରୁ ତଡ଼ିବା ।

ଅସହଯୋଗ ଯୁଦ୍ଧ କ'ଣ ? ସାମାନ୍ୟ କେତେ ଜଣ ଇଂରେଜ ଏ ଦେଶ ଶାସନ କରୁଛନ୍ତି । ଆମେ ତାଙ୍କ କଥାରେ ଚାଲିବା ନାହିଁ । ତାଙ୍କ ଆଇନ ମାନିବା ନାହିଁ । ତାଙ୍କ କଚେରୀକୁ ଯିବା ନାହିଁ କି ତାଙ୍କ ସ୍କୁଲ କଲେଜରେ ପଢ଼ିବା ନାହିଁ । ସେମାନଙ୍କୁ ଏକଘରକିଆ କରି ରଖିବା । ଆମେ ସାହାଯ୍ୟ ନ କଲେ, ସେ ତ ମୁହୂର୍ତ୍ତେ ଏଠାରେ ଚଳିପାରିବେ ନାହିଁ । ସାଙ୍ଗେସାଙ୍ଗେ ବସ୍ତାନି ବାନ୍ଧି ନିଜ ଦେଶକୁ ବାହାରି ଯିବାକୁ ବାଧ୍ୟ ହେବେ । ଆମ ଦେଶ ହେବ ଆମର ।

ଗାନ୍ଧିଙ୍କର ଏ କଥା ଦେଶ ଲୋକଙ୍କ ମନକୁ ପାଇଲା । ସମସ୍ତେ ଏଥିରେ ମାତି ଉଠିଲେ । ଗାନ୍ଧିଙ୍କୁ ମହାତ୍ମା ବୋଲି କହିଲେ । ସେ ଦେଶର ନେତା, ମୁରବି—ସମସ୍ତଙ୍କର ବାପା ପରି । ତେଣୁ ଦେଶର ଲୋକେ ତାଙ୍କୁ ଶ୍ରଦ୍ଧାରେ ଡାକିଲେ ବାପୁଜୀ ।

ଧୀରେ ଧୀରେ ଚାରିଆଡ଼େ ଗାନ୍ଧିଙ୍କ କଥା ବ୍ୟାପିଗଲା । ଦେଶର ସବୁ ଲୋକ ଏକଜୁଟ ହେଲେ ।

ଲକ୍ଷ ଲକ୍ଷ ପିଲା ପାଠପଢ଼ା ଛାଡ଼ି ସ୍କୁଲ କଲେଜରୁ ବାହାରି ଆସିଲେ । ଓକିଲମାନେ କଚେରୀକୁ ଗଲେ ନାହିଁ । ହଜାର ହଜାର ଟଙ୍କା ଦରମା ପାଉଥିବା ଅଫିସରମାନେ ଚାକିରୀରୁ ଇସ୍ତଫା ଦେଇଦେଲେ ।

ଇଂରେଜମାନେ ପ୍ରମାଦ ଗଣିଲେ । ନିଜ ଶାସନ ଦୃଢ଼ ରଖିବାପାଇଁ ଲୋକଙ୍କ ଉପରେ ନାନାପ୍ରକାର ଅତ୍ୟାଚାର କଲେ । ଗାନ୍ଧିଙ୍କୁ ଜେଲରେ ପୂରାଇଲେ । ଗାନ୍ଧିଙ୍କ ସାଙ୍ଗରେ ଯେତେ ବଡ଼ ବଡ଼ ନେତା ଯୋଗ ଦେଇଥିଲେ, ସେ ସମସ୍ତଙ୍କୁ ଜେଲରେ ରଖି ତାଙ୍କ ହାତରେ ଘଣା ପେଲାଇଲେ । ଛୋଟ ଛୋଟ ପିଲାଙ୍କୁ ବେତ ମାଡ଼ ଦେଲେ ।

ତଥାପି କେହି ଦବିଲେ ନାହିଁ । ଯେ ଥରେ ଜେଲ ଗଲା, ସେ ଆସି ହସିହସି କହିଲା, ପୁଣି ମୋତେ ଜେଲକୁ ନିଅ । ତା ସ୍ତ୍ରୀ, ପୁଅ, ଝିଅ, ବନ୍ଧୁବାନ୍ଧବ ସମସ୍ତେ ଜେଲ ଯିବାକୁ ତିଆର ହେଲେ—ଜେଲ ଗଲେ । ଯେଉଁ ପିଲା ଥରେ ଯାଇ ମାଡ଼ ଖାଇଲା, ସେ ପୁଣି ଆସି ହସିହସି ହାତ ପତାଇଦେଲା—ମାର, ଆଉ କେତେ ମାରିବ ମାର; କିନ୍ତୁ ତୁମେ ଆମ ଦେଶରୁ ଯାଅ ।

ବେତ ମାଡ଼ ବସି ହାତ ପାପୁଲି ଫାଟିଯାଏ । ରକ୍ତ ଝରଝର ବୋହିପଡ଼େ; ମାତ୍ର ଆଖିରୁ ଲୁହ ଝରେ ନାହିଁ । ସେ ହସିହସି ଗୀତ ଗାଏ, "ଯେତେ ମାରିବ ମାର; ଦେଶପାଇଁ ଆମେ ମୁଣ୍ଡ ପାତିଅଛୁ ବେତମାଡ଼ କିବା କର ।"

ଦିନେ ନୁହେ, ଦୁଇ ଦିନ ନୁହେ; ବର୍ଷେ ନୁହେ କି ଦୁଇ ବର୍ଷ ନୁହେ —ଏମିତି ସତେଇଶ ବର୍ଷ ଯାଏ ଯୁଦ୍ଧ ଚାଲିଲା । ଅସହଯୋଗ ଯୁଦ୍ଧ—ଅହିଂସାର ଯୁଦ୍ଧ । ଜଣେ ମାରୁଛି—ଅନ୍ୟ ଜଣକ ସହୁଛି । ମାଡ଼ ଖାଇଖାଇ ମରୁଛି, ତଥାପି ଦବୁ ନାହିଁ । ଜଣେ ମଲେ ଶହେ ଜଣ ବାହାରୁଛନ୍ତି । ଏଇ ସତେଇଶ ବର୍ଷ ଭିତରେ ବହୁ ଲୋକ ମଲେ, ବହୁତ ଧନ ସମ୍ପତ୍ତି ନଷ୍ଟ ହେଲା । ତଥାପି ଆମ ଦେଶ ଲୋକେ ହଟିଲେ ନାହିଁ ।

ଶେଷକୁ ଇଂରେଜମାନେ ଦେଖିଲେ, ଆଉ ପାରିବେ ନାହିଁ । ସେମାନଙ୍କ ହାତରେ ବହୁତ ହତିଆର, ଗୋଳା ବନ୍ଧୁକ, ବୋମା, କମାଣ ଆଦି ପିଚ୍ଛୁଳାକେ ହଜାର ହଜାର ଲୋକ ମାରିଦେଇ ପାରିବେ । ଦୁଇଟା ବଡ଼ବଡ଼ ଯୁଦ୍ଧରେ ଜୟଲାଭ କରି ଗର୍ବରେ ଫୁଲି ଉଠୁଛନ୍ତି ତଥାପି ଆମର ଏ ଅହିଂସା

ଯୁଦ୍ଧରେ ହାରିଗଲେ । ଆମ ଦେଶ ଛାଡ଼ି ତାଙ୍କ ନିଜ ଦେଶକୁ ବାହାରିଯିବାକୁ ବାଧ୍ୟ ହେଲେ । ଆମ ଦେଶ ସ୍ୱାଧୀନ ହେଲା ।

—୭—

ଏପରି ଲଢ଼େଇ ସାରା ଦୁନିଆରେ ଆଉ କେବେ କେଉଁଠି ହୋଇ ନ ଥିଲା । ତେଣୁ ମହାତ୍ମା ଗାନ୍ଧିଙ୍କୁ ସବୁ ଦେଶର ଲୋକେ ଖୁବ୍ ଖାତିର୍ କଲେ । ଦେବତା ଭାବି ମୁଣ୍ଡିଆ ମାରିଲେ । ଯେଉଁଠି ଯେ ତାଙ୍କ କଥା ଶୁଣିଲେ; ସେ ଧନ୍ୟଧନ୍ୟ କହିଲେ ।

ଆଗରୁ କଥା ଥିଲା—ପାହାରକୁ ଦୁଇ ପାହାର । ଯେ ପାହାରେ ପକାଇଲା, ତାକୁ ଦୁଇ ପାହାର ଦେଇ ପ୍ରତିଶୋଧ ନେବ । କିନ୍ତୁ ମହାତ୍ମା ଗାନ୍ଧି କହିଲେ—ମରିବ ପଛକେ ମାରିବ ନାହିଁ । ଯେ ଯେତେ ମାରୁ ସହିବ, କିନ୍ତୁ ତାକୁ ହିଂସା କରିବ ନାହିଁ ।

ଯାହା ହେଉ, ଦେଶ ସ୍ୱାଧୀନ ହେଲା । ସତେଇଶ ବର୍ଷ କାଳ ଯୁଦ୍ଧ ପରେ ଇଂରେଜମାନେ ଏ ଦେଶରୁ ଗଲେ । ଆମରି ନେତାମାନେ ଆମ ଦେଶ ଶାସନ କଲେ ।

କିନ୍ତୁ ଗାନ୍ଧିଜୀଙ୍କ କାମ ସରି ନ ଥାଏ । ସେ କହୁଥାନ୍ତି, ସମସ୍ତେ ମନ ନିର୍ମଳ କର । ମନରୁ ହିଂସାକଥା ଭୁଲିଯାଅ । ଭାଇଭାଇ ପରି ଚଳ । ଆମେ ସମସ୍ତେ ଭାରତବାସୀ; ଗୋଟିଏ ଦେଶ ମାଆର ପୁଅ ଝିଅ । ଗୋଟିଏ ପରିବାରର ଭାଇଭଉଣୀ । ଏକଯୁଟ, ଏକମତ ହୋଇ କାମ କର, ତା ହେଲେ ଦେଶର ମଙ୍ଗଳ, ଆମର ମଙ୍ଗଳ ।

ସବୁ ଦେଶରେ ସବୁ କାଳରେ କେତେକ ମନ୍ଦ ଲୋକ ଥାଆନ୍ତି । କଥାରେ କହନ୍ତି—ଅଙ୍ଗାରକୁ ଯେତେ ଧୋଇ ସଫା କଲେ ବି ସେ ସେହିପରି କଳା ଦିଶିବ । ନିମ୍ବ ପିତାକୁ ଯେତେ ଦୁଧ ଚିନିରେ ପାଗ କଲେ ବି ତାହା ପିତା ଲାଗିବ । ସେମିତି ଜଣେ ଜଣେ ଦୋଷୀ ଥାଆନ୍ତି—ଯେତେ ଯାହା କଲେ ତାଙ୍କ ମନ ବଦଳେ ନାହିଁ ।

ଏହି ଖରାପ ଲୋକମାନେ ମହାପୁରୁଷମାନଙ୍କୁ ସହିପାରନ୍ତି ନାହିଁ । ଶ୍ରୀକୃଷ୍ଣଙ୍କୁ ଜରାବେର ଶର ମାରି ବଧ କରିଥିଲା । ଯୀଶୁଖ୍ରୀଷ୍ଟଙ୍କୁ ସେହିପରି

ଲୋକେ ନିନ୍ଦେଇ କରୁଥିଲେ । ମହାପଣ୍ଡିତ ସକ୍ରେଟିସ୍‌ଙ୍କୁ ଜବରଦସ୍ତ ବିଷ ପିଆଇଥିଲେ । ଗାନ୍ଧିଜୀ ମଧ୍ୟ ସେହିପରି ପ୍ରାଣ ଦେଲେ । ହେଲେ ଅମର ।

ଆମ ଦେଶରେ ଗୋଟିଏ ମହାମୂର୍ଖ ଦୋଷୀ ଥିଲା । ତା ନାଁ ଗଡ଼ସେ । ମହାତ୍ମା ଗାନ୍ଧିଙ୍କ କଥା ତାକୁ ଜମା ଭଲ ଲାଗିଲା ନାହିଁ । ସେ ଥରେ ଲୁଚିଲୁଚି ଆସି ଗାନ୍ଧିଜୀଙ୍କ ତଳପେଟକୁ ଦେଖାଇ ଗୁଳି ମାରିଲା । ସେତିକିବେଳେ ଗାନ୍ଧିଜୀ ଦୁଇ ହାତ ଯୋଡ଼ି ତାକୁ ନମସ୍କାର କରି କହୁଥାନ୍ତି—'ରାମ୍ ରାମ୍ । ରାମ ତୁମର ମଙ୍ଗଳ କରନ୍ତୁ !

ପିଲାଦିନେ ରମ୍ଭା ଯେଉଁ ରାମନାମ ଶିଖାଇଥିଲେ, ଶେଷରେ ମଧ୍ୟ ତାଙ୍କ ମୁହଁରେ ସେହି ରାମନାମ ।

ଲଗ ଲଗ ଚାରିଟି ଗୁଳିମାଡ଼ ଖାଇ ମହାତ୍ମା ଗାନ୍ଧି ସେଇଠି ଢଳି ପଡ଼ିଲେ । ଏକା ଆମ ଦେଶ କାହିଁକି, ପୃଥିବୀର ସବୁଆଡ଼େ ହାହାକାର ପଡ଼ିଗଲା । ଯେ ଶୁଣିଲା, ତା ଆଖିରୁ ଲୁହ ଗଡ଼ିଲା ।

ଯେଉଁ ସାହେବମାନଙ୍କୁ ସେ ଏ ଦେଶରୁ ତଡ଼ିଥିଲେ, ସେହି ସାହେବମାନେ ବି ତାଙ୍କୁ ଝୁରିହେଲେ ।

ମହାତ୍ମା ଗାନ୍ଧି କୋଟିକୋଟି ଲୋକଙ୍କୁ ଗୁଳି ମାଡ଼ରୁ ରକ୍ଷା କରିଥିଲେ— ଶେଷରେ ସେ ନିଜେ ଗୁଳିମାଡ଼ରେ ମଲେ । ପର ପାଇଁ ହସିହସି ଜୀବନ ଦେଲେ । ପୁଣି ଯେ ଗୁଳି ମାରୁଛି, ତାକୁ ହସିହସି ନମସ୍କାର କରି କହୁଛନ୍ତି— 'ରାମ ରାମ'; ରାମ ତୁମର ମଙ୍ଗଳ କରନ୍ତୁ ।

ଆମେ କେତେ ଜଣ ଏହା ପାରିବା ?
ଏଇଥିପାଇଁ ସେ ସିନା 'ମହାତ୍ମା ।'

---

ମୁଦ୍ରଣ—ନଉ ପବ୍‌ଲିଶିଂ ପ୍ରେସ, ବାଲୁବଜାର କଟକ—୨